# ଦେଶର ସମ୍ପଦ



ଡକ୍ଟର ହେମନ୍ତ କୁମାର ଛୋଟରାୟ

# ଦେଶର ସମ୍ପଦ

(ଶିଶୁ କବିତା ସଂକ୍ଳନ)

ଡକ୍ଟର ହେମନ୍ତ କୁମାର ଛୋଟରାୟ

ବିବେକ
ନାଗାବଗିଚା, ମଧୁବନ
ପୁରୀ - ୨

# ଦେଶର ସମ୍ପଦ
(ଶିଶୁ କବିତା ସଂକଳନ)

ଲେଖକ :
ଡକ୍ଟର ହେମନ୍ତ କୁମାର ଛୋଟରାୟ
ନାଗାବଗିଚା, ପ୍ରଥମଗଳି, ମଧୁବନ
ପୁରୀ - ୭୫୨୦୦୨

ପ୍ରକାଶିକା :
ଶ୍ରୀମତୀ ନିର୍ମଳା ଫତେସିଂହ
ବିବେକ, ନାଗାବଗିଚା,
ମଧୁବନ, ପୁରୀ -୨

ପ୍ରଚ୍ଛଦ, ଅଳଙ୍କରଣ :
ବ୍ରଜକିଶୋର ଜେନା

ଅକ୍ଷରସଜ୍ଜା :
ପି.ଏମ୍. କମ୍ପ୍ୟୁଟର୍ସ,
ସର୍ବୋଦୟ ନଗର, ପୁରୀ-୨

ମୁଦ୍ରଣ : ତୁଡୁଲି ପ୍ରୋସେସ୍ ଏଣ୍ଡ୍ ଅଫ୍‌ସେଟ୍, ଭୁବନେଶ୍ୱର

ପ୍ରଥମ ପ୍ରକାଶ : ୨୦୧୦

ମୂଲ୍ୟ : ୩୨/-

**DESHARA SAMPAD**
(Children's Poetry Collection)

Writer :
**Dr. Hemanta Kumar Chhotaray**
**Naga Bagicha, Ist Lane,**
**Madhuban**
**Puri - 752002**

Publisher :
**Smt. Nirmala Fatesingh**
**VIVEK, Nagabagicha**
**Madhuban, Puri - 2**

Cover Design , Art :
**Brajakishore Jena**

D.T.P. :
**P.M.Computers**
**Sarbodaynagar, Puri-2**

Printed at :

First Edition : 2010

Price : **32/-**



ବାବୁଜୀ,

ଗାନ୍ଧିବାଦୀ ପିତାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ଆପଣ ସମାଜସେବାକୁ ଜୀବନର ବ୍ରତ ରୂପେ ବାଛିନେଇଛନ୍ତି । ନିଜର ଆଦର୍ଶ-ଚିନ୍ତାଧାରା ଓ ମହନୀୟଗୁଣ ଆପଣଙ୍କୁ ଜନପ୍ରିୟ କରାଇଛି । ତ୍ୟାଗ ଓ ସଂଘର୍ଷମୟ ଜୀବନରେ ଆପଣଙ୍କ ଧୈର୍ଯ୍ୟ, ମହତପଣିଆ ଆମର ତଥା ଆମ ବଂଶଧରମାନଙ୍କ ପାଇଁ ପ୍ରେରଣାର ଉତ୍ସ ହେଉ ।

କୋମଳମତି ଶିଶୁମାନେ ଏ ଦେଶର ସମ୍ପଦ । ସେମାନେ ଆମଦେଶର ମହାପୁରୁଷମାନଙ୍କ ଆଦର୍ଶରେ ଅନୁପ୍ରାଣିତ ହୁଅନ୍ତୁ । ସମାଜର ମଙ୍ଗଳ ପାଇଁ ନିଜକୁ ନିୟୋଜିତ କରନ୍ତୁ । ଏହି ଭାବନା ରଖି ସେମାନଙ୍କୁ ପ୍ରେରଣା ଦେବାପାଇଁ ଶିଶୁ କବିତା ସଂକଳନ **"ଦେଶର ସମ୍ପଦ"** ଲେଖିଛି ।

ଏହି ପୁସ୍ତକଟି ଆପଣଙ୍କୁ ଉତ୍ସର୍ଗ କରୁଛି ।

**ହେମନ୍ତ**

ଏଥିରେ ଅଛି :



□□□

# • କର୍ତ୍ତବ୍ୟ ପାଳନ •

ଦିଲ୍ଲୀ ନଗରୀର ପ୍ରାନ୍ତେ ରହୁଥିଲା
ବିଧବା 'ଜାନକୀ ବାଈ',
ସାତ ବରଷର ପୁଅଟିଏ ଛଡ଼ା
ସାହା ତା' ନ ଥିଲେ କେହି ।
ଭଙ୍ଗା କୁଡ଼ିଆରେ ଦୁଇପ୍ରାଣୀ ପାଇଁ
ସାତ ସପନ ଆହାର,
ଦ୍ୱାର ଦ୍ୱାର ବୁଲି ମାଗି ଚଳୁଥିଲା
ଚାହିଁ ମୁହଁକୁ ପୁଅର ।
ଭିକ୍ଷାମାଗି ଦାଣ୍ଡେ ଯାଉଥିଲା ଦିନେ
ପୁଅକୁ ସାଙ୍ଗରେ ଧରି,
ତୀରଟିଏ କାହୁଁ ବାଜିଗଲା ଆସି
ପୁଅ ଦେହେ ଶକ୍ତ କରି ।



ଚିରଦିନ ପାଇଁ ଲୋଟିଗଲା ପୁଅ
ଆଉ ନ ପାରିଲା ଉଠି,
ରଡ଼ିଛାଡ଼ି ମାଆ କାନ୍ଦି ଗଡ଼ିଗଲା
ହରାଇ ଧନକୁ ସେଠି ।



କି ଦୋଷ କରିଲି କାହାର ମୁଁ ଏତେ
ମୋ'ପୁଅ ଜୀବନ ନେଲା ?
ରୋଷ ଭରି ମନେ ନ୍ୟାୟ ମାଗିବାକୁ
'କାଜି'ଙ୍କ ପାଖକୁ ଗଲା ।
ବାଟରେ ଜାଣିଲା ନିଜେ 'ସୁଲତାନ'
ବିନ୍ଧିଛନ୍ତି ତୀକ୍ଷ୍ଣ ଶର,
ଲାଖବିନ୍ଧା କର୍ମେ ସଉକ ତାଙ୍କର
ନିତି କରନ୍ତି ଶିକାର ।

'ଗିଆସ୍ ଉଦ୍ଦୀନ୍ ବଲବନ' ନାମ
ସାରା ଭାରତର ରାଜା,
ହୋଇଥା'ନ୍ତୁ ଯିଏ ନ୍ୟାୟ ସେ ମାଗିବ
ଦୋଷୀ ପାଉ କଡ଼ା ସଜା ।
କାନ୍ଧେ ଶବ ଧରି ପୁତ୍ରହରା ନାରୀ
'କାଜି' ଦରବାରେ ଠିଆ,
ପଚାରିଲେ 'କାଜି' ଅବସ୍ଥା ତା' ଦେଖି
"କି ହେଲା କହଗୋ ମାଆ ?"

ବିନୟେ ବିଧବା କହଇ, "ପାଷାଣ୍ଡ
ମାରିଛି ପୁତ୍ରକୁ ମୋର,
ନିଶ୍ଚେ ଦଣ୍ଡଦେବ ସତ୍ୟକରି କୁହ
ପ୍ରକାଶିବି ନାମ ତା'ର ।"
"କରୁଛି ଶପଥ ନିଶ୍ଚେ ଦଣ୍ଡ ଦେବି
ହୋଇଥାଉ ମହାରାଜା,
ଅକାଳେ ନାଶିଛି କୋମଳ ଶିଶୁକୁ
ଯୋଗ୍ୟ ପାଇବାକୁ ସଜା ।"

ପ୍ରତିଶ୍ରୁତି ପାଇ ଦୁଃଖରେ 'ଜାନକୀ'
କହିଲା ସମସ୍ତ କଥା,
"ଶିଶୁହନ୍ତା ହୋଇ ନିଜେ 'ସୁଲ୍‌ତାନ'
ଦେଇଛନ୍ତି ମତେ ବ୍ୟଥା ।"
ଆଚମ୍ବିତ 'କାଜି' ସଙ୍କଟେ ପଡ଼ିଲେ
ବିଧବା ବଚନ ଶୁଣି,
ରାଜାଙ୍କ ଅଧୀନେ ଚାକିରି ତାଙ୍କର
ଦେଇଛନ୍ତି ଦାନାପାଣି ।



ନ୍ୟାୟ ଦେବାପାଇଁ ବଚନବଦ୍ଧ ସେ
ହୁଡ଼ିବେ କେମିତି ଏବେ ?
ଡକାଇ ରାଜନ ଅପରାଧ ପାଇଁ
ବାଧହେଲେ ଦଣ୍ଡଦେବେ ।

'କାଜି' ଦରବାରେ ଉପସ୍ଥିତ ହେଲେ
'ସୁଲ୍‌ତାନ' ବାର୍ତ୍ତା ପାଇ,
ଧର୍ମାବତାରଙ୍କୁ ବେନିକର ଯୋଡ଼ି
ଦେଲେ ସତକଥା କହି ।

" ଶରାଭ୍ୟାସବେଳେ ଅଜାଣତେ ମୋର
ହାତରୁ ଖସିଲା ତୀର,
ଲଜ୍ଜିତ ମୁଁ ଏବେ ସେହି ଶରାଘାତେ
ପ୍ରାଣ ଗଲା ଶିଶୁଟିର ।"

ବିଚାର ହୋଇଲା ଭରଣପୋଷଣ
ବିଧବା ମାଆକୁ ଦିଅ,
ପୁତ୍ରକୁ ହରାଇ ଭୋଗୁଛି କଷଣ
ଦାୟିତ୍ୱ ତାହାର ନିଅ ।

ମଥାନତ କରି ସମର୍ଥନ କଲେ
ବିଚାରକୁ 'ସୁଲ୍‌ତାନ',
ରାଜକୋଷ ଅର୍ଥେ ଚଳିବ 'ଜାନକୀ'
ବଞ୍ଚିଥିବ ଯେତେଦିନ ।
ନିଜ ଆସନରୁ ଉଠିଆସି 'କାଜି'
ରାଜାଙ୍କୁ କ୍ଷମା ମାଗିଲେ,
ମହତ ପଣରେ 'ସୁଲତାନ' ହସି
'କାଜି'ଙ୍କୁ କୋଳେଇ ନେଲେ ।
"ରାଜା ସିନା ମୁହିଁ ଶାସନ କରୁଛି
ଦେଶର ମୁଖିଆ ହୋଇ,
ନ୍ୟାୟକୁ ତଉଲି ବିଚାର ଦେବାକୁ
ତୁମେ ଅଛ ଦେଶ ପାଇଁ ।
ପଦବୀରେ ରହି କର୍ତ୍ତବ୍ୟ ପାଳନ
କରିଛ ଅତି ଯତନେ,
ଦେଶର ମଙ୍ଗଳେ କର୍ତ୍ତବ୍ୟର ଶିକ୍ଷା
ପଡୁ ଦେଶବାସୀ କାନେ ।



ସଭିଏଁ ଏଭଳି କର୍ତ୍ତବ୍ୟ ପାଳିଲେ
ଦେଶ ହୋଇଯିବ ସୁନା,
ଅନ୍ୟାୟ ଦୁର୍ନୀତି ହୋଇଯିବ ଲୋପ
ଦୁଷ୍ଟ ହେବେ ବାଟବଣା ।"



# • କଥାରେ ନୁହେଁ କାମରେ •



ଶୈଶବ କାଳରେ 'କୌରବ' 'ପାଣ୍ଡବ'
'ଦ୍ରୋଣାଚାର୍ଯ୍ୟ' ପାଶେ ଯାଇ,
ଅସ୍ତ୍ରବିଦ୍ୟା ସହ ନୀତିଶିକ୍ଷାମାନ
ଶିଖୁଥିଲେ ମନ ଦେଇ ।
ଦିନେ ଗୁରୁଦେବ କହିଲେ ସଭିଙ୍କୁ,
"କଥାଟିଏ ମନେ ରଖ,
ରାଗିବ ନାହିଁଟି କାହାରି ଉପରେ
କ୍ରୋଧ ଦେଇଥାଏ ଦୁଃଖ ।
ପରମ ବଇରି କ୍ରୋଧ ମଣିଷର
କରେ ସେ ଅନେକ କ୍ଷତି,
ଦୂରେଇ ରହିଲେ କ୍ରୋଧଠୁ ମଣିଷ
ଯାଏ ସବୁଠାରେ ଜିତି ।"

ପରଦିନ ବସି ପଚାରିଲେ ଗୁରୁ,
"କାଲି ପାଠ ଅଛି ମନେ,
କେଉଁ ନୀତିଶିକ୍ଷା ଦେଇଥିଲି କୁହ
ଠିଆ ହୋଇ ଜଣେ ଜଣେ ।"

ସର୍ବେ ଜଣେ ଜଣେ ଉତ୍ତର କହିଲେ
ଛାଡ଼ି ଯୁଧିଷ୍ଠିର ଏକା,
ରାଗିଗଲେ ଗୁରୁ, "ଛାର ପାଠ ଏହି
ଭୁଲିଲୁ କେମିତି ବୋକା ।"
ମଉନ ରହିଲେ ଏ ପ୍ରଶ୍ନ ପଡ଼ିଲେ
ଯୁଧିଷ୍ଠିର ଦୁଇ ଦିନ,
ତୃତୀୟ ଦିନକୁ ଉତ୍ତର କହିଲେ
ଖୁସିଥିଲା ତାଙ୍କ ମନ ।

ପଚାରିଲେ ଗୁରୁ, "ଇଏ କି ସ୍ୱଭାବ
ପ୍ରଥମେ କହିଲୁ ନାହିଁ ?
ଦୁଇଦିନ ପରେ କି ହେଲା ତୋହର
ଉତ୍ତର ପାରିଲୁ କହି ?"
ବିନୟେ କହିଲେ ଶିଷ୍ୟ ଯୁଧିଷ୍ଠିର,
"ଶୁଣିଥିଲି ନୀତି କଥା,
କାମରେ ପ୍ରୟୋଗ କରି ନ ଥିଲି ମୁଁ
ରହିଥିଲା ମନେ ବ୍ୟଥା ।



ଦୁର୍ଯ୍ୟୋଧନ ସହ ବାର୍ତ୍ତାଳାପ ବେଳେ
ରାଗିଥିଲି ସେହି ଦିନ,
ନ ରାଗ କାହାରେ କହିଦେବା ପାଇଁ
ବଳିଲା ନାହିଁ ମୋ ମନ ।
ବର୍ଜନ କରିଲି ମନରୁ କ୍ରୋଧକୁ
ଦ୍ୱିତୀୟ ଦିନ ଆଳାପେ,
ନୀରବେ ସହିଲି ଭ୍ରାତାଙ୍କ ବଚନ
କହୁଥିଲେ ଯାହା କୋପେ ।
କଥାରେ କହିଲେ କି ଲାଭ ହୋଇବ
କାମେ ନ ଲଗାଏ ଯିଏ,
ନୀତିକଥା ଶୁଣି କାମେ ଯେ ଲଗାଏ
ମହତ ଅଟଇ ସିଏ ।
କେବଳ ବଚନ ହୁଏ ମୂଲ୍ୟହୀନ
ଆଚରଣେ ଯଦି ନାହିଁ,
ଶଠ ସେହି ନର କଥାକାମେ ଯାର
ପ୍ରଭେଦ ବାରି ହୁଅଇ ।



ସେଥିପାଇଁ ଗୁରୁ ଦୁଇଦିନ ଯାଏଁ
ପାରିନି ଉତ୍ତର ଦେଇ,
ପ୍ରଶ୍ନକଲାବେଳେ ମଉନ ରହିଲି
କ୍ଷମା ଚାହୁଁଅଛି ମୁହିଁ ।”
ହସି ହସି ଗୁରୁ କହିଲେ, “ବାବୁ ତୁ
ଶ୍ରେଷ୍ଠ ଶିଷ୍ୟ ଅଟୁ ମୋର,
ଯୁଗ ଯୁଗ ପାଇଁ ଏ ଧରାଧାମରେ
ନାମ ରହିବ ତୋହର ।”



# • ସଭିଏଁ ଆମେ ସମାନ •



ଭାରତୀୟ ଛାତ୍ର ଏକାଠି ହୋଇଲେ
ଲଣ୍ଡନରେ ଯେତେ ଥିଲେ,
ଗାନ୍ଧିଙ୍କୁ ବଧେଇ ଜଣେଇବା ପାଇଁ
ସଭା ଆୟୋଜନ କଲେ ।

କଳା ଗୋରା ଭେଦ ଦୂରକରି ଗାନ୍ଧି
ହୋଇଥା'ନ୍ତି ବିଶ୍ୱଜିତା,
ଆଫ୍ରିକା ଦେଶରୁ ହଟିବା ଏ ପ୍ରଥା
ନୁହଁଇ ସହଜ କଥା !

ନ ଥିଲା କମାଣ ବର୍ଚ୍ଛା ତରବାରୀ
କେମିତି ଲଢେଇ ସିଏ ?
ବାଘପରି ବଳ ପାଣି ଫାଟିଗଲା
ଚକିତ ଶୁଣିଲା ଯିଏ ।

ନୂଆ ଅସ୍ତ୍ରଟିଏ ସୃଷ୍ଟି କରଛନ୍ତି
'ଅସହଯୋଗ' ତା' ନାଆଁ,
ବିନା ରକ୍ତପାତେ ଲଢେଇ ଚାଲଇ
'ଅହିଂସା' ତାହାର ରାହା ।

ଯେଉଁ ଦେଶେଗଲେ ସେ ମହାନ ନେତା
ଆଶ୍ଚର୍ଯ୍ୟ ସେ ଦେଶବାସୀ,
ଦେଖିବାକୁ ତାଙ୍କୁ ଆଗ୍ରହର ସହ
ଠୁଳ ହେଉଥିଲେ ଆସି ।



ଛାତ୍ର ସଭାଟିରେ ଯୋଗଦେବେ ଗାନ୍ଧି
ବହୁଛାତ୍ର ପହଞ୍ଚିଲେ,
ସଭାକୁ ସଫଳ କରିବା ଲକ୍ଷ୍ୟରେ
କାମରେ ଲାଗିପଡ଼ିଲେ ।

ମଞ୍ଚ ସଜାସଜି ଅତିଥି ସତ୍କାର
କାମ ହୋଇଗଲା ବଣ୍ଟା,
ଯଥା ସମୟରେ କାମ ସାରିବାକୁ
ଭିଡ଼ିଲେ ସରବେ ଅଣ୍ଟା ।

ସଭାର ଆଗରୁ ଭୋଜନ ହେବାକୁ
ସ୍ଥିର ହୋଇଥିଲା କଥା,
ସବୁ ଭାରତୀୟ ଖାଇଲେ ଏକାଠି
ରହିବ ଆମ ଏକତା ।

ସରିଲା ରୋଷେଇ ଚାଲିଲା ଭୋଜନ
ଦଳ ପରେ ଦଳ ବସି,
ବଢ଼ାବଢ଼ି କରି ପରଷିବା କାମ
କରୁଥିଲେ ଦଳେ ମିଶି ।

ଆଉ ଦଳେ ମିଶି ସଫା କରୁଥିଲେ
ଅଇଁଠା ଖାଇବା ଥାଳି,
ସଅଳ ସାରିଲେ ଯିବେ ସଭାସ୍ଥଳ
ମନେ ହେଉଥିଲେ ଭାଳି ।



ଜଣ ଜଣ କରି ଖସି ଚାଲିଗଲେ
ରହିଗଲେ ଜଣେ ସେଠି,
କାମ କରୁଥିଲେ ନ ଚାହିଁ କାହାକୁ
ସରିଲେ ପଡ଼ିବେ ଉଠି ।

ଏହି ସମୟରେ ସେଠାକୁ ଆସିଲେ
'ଛାତ୍ର ପ୍ରତିନିଧି' ଜଣେ,
ଚେତାଇ କହିଲେ "ଏଯାଏଁ କରୁଛ
ସଭା ହେବ ଚାଲ ତେଣେ ।"

ହେଲେହେଁ ସେ ବାବୁ ନ ଶୁଣି କଥାକୁ
କାମେ ଲାଗିଥା'ନ୍ତି ବସି,
'ଛାତ୍ର ପ୍ରତିନିଧି' ଚିଡ଼ି ଉଠାଇଲେ
ଦେଖିଲେ ପାଖକୁ ଆସି ।

ଚକିତ ହୋଇଲେ ଦେଖି ତାଙ୍କ ମୁଖ
ଗାନ୍ଧିଜୀ ଅଟନ୍ତି ସିଏ,
ସଭା ତାଙ୍କ ପାଇଁ ନମସ୍ୟ ଆମର,
କାମ ଦେଲା ତାଙ୍କୁ କିଏ ?

କ୍ଷମାଭିକ୍ଷା କଲେ 'ଛାତ୍ର ପ୍ରତିନିଧି'
'ଗାନ୍ଧିଜୀ'ଙ୍କୁ ଯୋଡ଼ି କର,
"ଆପଣଙ୍କ ମୁହଁନ ଦେଖି ଏମିତି
କରିଅଛି ବ୍ୟବହାର ।



ଆପଣଙ୍କ ସ୍ଥାନ ଏଠାରେ ନୁହଁଇ
ଆପଣ ମୁଖ୍ୟ ଅତିଥି,
ତୁଚ୍ଛ କାମ ଏଠି କରୁଛନ୍ତି ବସି,
ଦେଇଛି କିଏ କେମିତି ?"

ଯିବାପାଇଁ ଉଠି କହିଲେ 'ଗାନ୍ଧିଜୀ'
"ଦେଇନାହିଁ କେହି ମୋତେ,
କେଉଁ କାମ ନୁହେଁ ତୁଚ୍ଛ ଏ ସଂସାରେ
କରିଛି ମୁଁ ଇଚ୍ଛାମତେ ।

ତୁମେତ ଯେମିତି ମୁଁ ବି ସେମିତି
ଭାରତ ଆମର ମାଆ,
ଗୋଟିଏ ମାତାର ସନ୍ତାନ ସରବେ
ସାନ ବଡ଼ ଭାବ କିଆଁ ?

ହେଉ ସେ ଅତିଥି ହେଉ ସେ ଜନତା
ସଭିଏଁ ଆମେ ସମାନ,
କର୍ମୀ ପାଇଁ କର୍ମ ସମାନ ସବୁଠି
ନୁହେଁ କିଛି ବଡ଼ସାନ ।"

ଲାଜେ ଛାତ୍ରନେତା ମଥାନତ କଲେ
ମାନିଲେ, "ଏକଥା ସତ,
ଏମିତି ଭାବନା ଅନ୍ତରେ ଯାହାର
ଜିଣିବ ସିଏ ଜଗତ ।"

□□□

# • ଜାତିପାଇଁ କଲା କାମ •




ସକାଳୁ ସକାଳୁ ଛୁଟି ଦିନଟାରେ
ଛାତ୍ରାବାସ ପିଲା ମିଶି,
ଥଟ୍ଟାମଜା ସହ କରୁଥିଲେ ଗୋଳ
ବାରଣ୍ଡା ଉପରେ ବସି ।
ହଠାତ୍ ଅଧ୍ୟକ୍ଷ ପହଞ୍ଚିଲେ ଆସି
ରାଗିଲେ ଏସବୁ ଦେଖି,
"ତୁମ କାମ ଆଜି କୋଠରୀ ନିର୍ମଳ
କାହିଁକି ରଖିଛ ବାକି ?
ତୁଚ୍ଛାଟାରେ ବସି କରୁଅଛ ଗୋଳ
ଭାଙ୍ଗୁଛ ଶୃଙ୍ଖଳା ଏଠି,
ଭୁଲି ଯାଉଅଛ କର୍ତ୍ତବ୍ୟ ନିଜର
ଯାଅ କୋଠରୀକୁ ଉଠି ।"

କଠୋର ମିଜାସ ଅଧ୍ୟକ୍ଷ ଅଟନ୍ତି
ପିଲାଏ ଡରନ୍ତି ତାଙ୍କୁ,
କହୁ କହୁ ସବୁ ଉଠି ଚାଲିଗଲେ
ନ ଚାହିଁ କିଏ କାହାକୁ ।

ରହିଗଲା ଜଣେ ପଢୁଥିଲା ବସି
ବହିଟି ନିଜର ଧରି,
ଅଧ୍ୟକ୍ଷ କହିଲେ, "ଯାଉନ କାହିଁକି
ସଫେଇ ପାଇଁ କୋଠରୀ ?
ଦେଖେଇ ହେଉଛ ପାଠପଢ଼ି ବସି
ଭାବୁଛ ରାଗିବି ନାହିଁ,
ସବୁ ପିଲାଠାରୁ ତୁମେ କି ଅଲଗା
କୁହ ମୋ ମୁହଁକୁ ଚାହିଁ ?"

ଅଧ୍ୟକ୍ଷଙ୍କୁ ଚାହିଁ ସେହି ପିଲା ଉଠି
ବିନୟେ ଦେଲା ଉତ୍ତର,
"ବିଛଣାରୁ ଉଠି କରିଅଛି ସଫା
କୋଠରୀଟିକୁ ମୋହର ।"
ବିଶ୍ୱାସ ନକରି ଅଧ୍ୟକ୍ଷ କହିଲେ,
"ମିଛ କୁହ କାହିଁପାଇଁ ?"
"ଆସନ୍ତୁ ଦେଖିବେ" କହିଲା ପିଲାଟି
"ମିଛ ମୋ ଜାତକେ ନାହିଁ ।



ଠିକ୍ ସମୟରେ ସାରିଥାଏ କାମ
ମାନେ ଗୁରୁ-ଗୁରୁଜନ,
ଅଯଥା ସମୟ ନଷ୍ଟ କରେନାହିଁ
ଅଧ୍ୟୟନେ ଦିଏ ମନ ।"
ବିଶ୍ୱାସ କଲେନି ଛାତ୍ରକୁ ଅଧ୍ୟକ୍ଷ
ଦେଖିବା ପାଇଁ ଚାଲିଲେ,
ଅତ୍ୟନ୍ତ ନିର୍ମଳ କୋଠରୀ ତାହାର
ଦେଖି ଆଚମ୍ବିତ ହେଲେ ।
ସରମେ ବୁଡ଼ିଲେ ଅଧ୍ୟକ୍ଷ ସେଠାରେ
ଭୁଲ୍ ବୁଝିଲେ ନିଜର,
ସତ୍ୟବାଦୀ ଛାତ୍ର ବିନୟୀ ସ୍ୱଭାବ
ହୃଦୟେ ଟାଣିଲା ଗାର ।
କହିଲେ, "ସତ୍ୟ ତୁ କହିଛୁ ବାବୁରେ
ନମ୍ର ହୋଇ ମୋ ଆଗରେ,
ହେଳା କରିନାହୁଁ କାମରେ ତୁ କେବେ
ଧ୍ୟାନ ଦେଇଛୁ ପାଠରେ ।



ବଡ଼ ହେବ ଦିନେ ଏମିତି ସ୍ୱଭାବେ
ଚାଲୁଥିବ ବାଟ ଯିଏ,
ସବୁରି ମନକୁ ଜିଣିବ ନିଶ୍ଚୟ
କର୍ଣ୍ଣଧାର ହେବ ସିଏ ।"



ବଡ଼ ହେଲା ପରେ ସେହିପିଲା ଦିନେ
ଦେଶରସ୍ୱରାଜ୍ୟ ପାଇଁ,
ଜାଗରଣ ଆଣି କାରା ବରିଥିଲା
ଅନେକ ଯାତନା ସହି ।

'ବିଦେଶୀ ବର୍ଜନ', 'ସ୍ୱଦେଶୀ', 'ସ୍ୱରାଜ୍ୟ'
ଦାବୀ 'ଜାତୀୟ ଶିକ୍ଷା'ର,
ଚାରୋଟି ସୂତ୍ରର ଜନକ ଥିଲା ସେ
'ଲୋକମାନ୍ୟ' ଏ ଦେଶର ।

'ଗାନ୍ଧି' ମହାତ୍ମାଙ୍କ ପ୍ରିୟ ସାଥୀ ହେଲା
'ବାଲଗଙ୍ଗାଧର' ନାମ,
ତ୍ୟାଗ, ତିତିକ୍ଷାରେ ଜୀବନ ବିତେଇ
ଜାତିପାଇଁ କଲା କାମ ।



# • ଦେଶର ସମ୍ପଦ •

'ସେଲିଉକ୍‌ସ' ଥିଲେ ରାଜ ଅତିଥି
'ଚନ୍ଦ୍ରଗୁପ୍ତ' ଦରବାରେ,
ଉଙ୍କି ମାରୁଥିଲା କେତେଦିନ ଧରି
ପ୍ରଶ୍ନଟି ତାଙ୍କ ମନରେ ।

"ବିଶାଳ ସେନା ବିରଳ ହତିଆର
ସବୁ ଥାଇ ହାରିଗଲି,
'ଚନ୍ଦ୍ରଗୁପ୍ତ'ଙ୍କର ସେନାକୁ ସାମନା
କିଆଁ କରି ନ ପାରିଲି ?"

ହାରିଗଲା ପରେ ଜେମା 'ସେଲିନା'କୁ
'ଚନ୍ଦ୍ରଗୁପ୍ତ' ହସ୍ତେ ଦେଇ,
ରହିଥା'ନ୍ତି ଆସି ଉଆସରେ 'ସେଲି'
ରାଜାଙ୍କ ଅତିଥି ହୋଇ ।



ଦୂର କରିବାକୁ ମନରୁ ସନ୍ଦେହ
'ଚନ୍ଦ୍ରଗୁପ୍ତ'ଙ୍କୁ କହିଲେ,
"ଜଣାଇବେ ମୋତେ ବିଜୟ ରହସ୍ୟ
କେମିତି ଯୁଦ୍ଧ ଜିଣିଲେ ?"

"ନିମିତ୍ତ ମୁଁ ଅଟେ ମୋ ଗୁରୁ 'ଚାଣକ୍ୟ'
ଚାଲେ ତାଙ୍କ ବୁଦ୍ଧିବଳେ,
ତାଙ୍କରି ଆଜ୍ଞାରେ ଶାସନ କରୁଛି
ଶ୍ରେଷ୍ଠ ସିଏ କଉଶଳେ ।

ବୁଦ୍ଧିମାନ ତାଙ୍କ ସମ ଏ ଜଗତେ
କିଏ କାହିଁ ଆଉ ନାହିଁ,
ବିଚିତ୍ର ଧୀଶକ୍ତି ନୀତିଗତ କଥା
କେହି ପାରେନାହିଁ କହି ।"

'ଚନ୍ଦ୍ରଗୁପ୍ତ'ଠାରୁ ଶୁଣି ଏ ଉତ୍ତର
'ସେଲି' ପ୍ରକାଶ କରିଲେ,
"ଖୁସି ମୁଁ ହୁଅନ୍ତି ଭେଟି ତାଙ୍କଠାରୁ
ରହସ୍ୟଟିକୁ ଜାଣିଲେ ।"

ସନ୍ଧ୍ୟା ସମୟରେ 'ଚାଣକ୍ୟ'ନିବାସ
'ଚନ୍ଦ୍ରଗୁପ୍ତ' ନେଲେ ଡାକି,
ମାମୁଲି କୁଟୀରେ'ଚାଣକ୍ୟ' ରହନ୍ତି
କାବା ହେଲେ 'ସେଲି' ଦେଖି ।



ରାଜାଙ୍କର ଗୁରୁ ଏତେବଡ଼ ନର
ରହନ୍ତି ଏହି କୁଟୀରେ ?
ଗର୍ବ, ଅହଙ୍କାର, ନାହିଁ ଆଡ଼ମ୍ବର
ବିଦ୍ୱାନଙ୍କ ଚଳଣିରେ ।

ଦୀପଟିଏ ଜାଳି ଲେଖୁଥିଲେ ବସି
ନ ଚାହିଁ କାହାକୁ ତିଳେ,
ପ୍ରଣାମ ଜଣାଇ 'ଚନ୍ଦ୍ରଗୁପ୍ତ', 'ସେଲି'
ଘର ଭିତରକୁ ଗଲେ ।

ଆଳାପ କରିବେ 'ସେଲି' ଆସିଛନ୍ତି
'ଚାଣକ୍ୟ' ପାରିଲେ ଜାଣି,
ଦୀପଟି ଲିଭାଇ ଆସିଲେ ବାହାରି
ପଟି ପକାଇଲେ ଆଣି ।

ଖୋଲା ଅଗଣାରେ ଜହ୍ନ ଜୋଛନାରେ
ଡାକିଲେ ବସିବା ପାଇଁ,
ଏହା ଦେଖି 'ସେଲି' ଜିଜ୍ଞାସା କରିଲେ,
'ଚାଣକ୍ୟ'ବଦନ ଚାହିଁ ।



"କହିବେ କି ମୋତେ ଆହେ ମହାଭାଗ
କିଆଁ ଲିଭାଇଲେ ଦୀପ ?
ବାହାରକୁ କିଆଁ ଡାକିଲେ ଆମକୁ
କରିବା ପାଇଁ ଆଳାପ ?"

"ଜଟିଳ ନୁହଁଇ କଥାଟି ସରଳ"
'ଚାଣକ୍ୟ' କହିଲେ ହସି,
"ବାହାରେ ଜୋଛନା ଚଳିବ ତହିଁରେ
ଆଳାପ କରିଲେ ବସି ।



କେବଳ ଆଳାପ କାମରେ ଆମର
ଦୀପାଳିଟି ଲୋଡ଼ା ନାହିଁ,
ଅକାରଣେ କିଆଁ ସରିବ ତଇଳ
ଦେଶର ସମ୍ପଦ ସେହି ।"

'ଚାଣକ୍ୟ'ଙ୍କ ଠାରୁ ପାଇ ଏ ଉତ୍ତର
ଚକିତ ହୋଇଲେ 'ସେଲି',
ମୂଲ୍ୟବାନ ଏହି କଥାଟି ଶିଖିଲେ
ଯିବେ ନାହିଁ କେବେ ଭୁଲି ।

ହଟିଲା ମନରୁ ସନ୍ଦେହ କୁହେଳି
ଜାଣିଲେ ଏ ଦେଶ ନୀତି,
ସାମାନ୍ୟ କଥାକୁ ଗୁରୁତ୍ୱର ସହ
ବିଚାର ଏଠି କରନ୍ତି ।



ଏହିଭଳି ନୀତି ଯେଉଁ ଦେଶେ ଥିବ
ସୂର୍ଯ୍ୟସମ ତା'ର ତେଜ,
ଯେତେ ସେନାବଳ ଥିଲେବି ତାହାକୁ
ଜିଣିବା ନୁହେଁ ସହଜ ।



# • ଫୁଙ୍କିଲା ସମତା ମନ୍ତ୍ର •



ନିତି ଦେଖୁଥିଲା ପିଲାଟିଏ ଆସି
ଅମୃତଭଣ୍ଡା ଗଛକୁ,
ବାଡ଼ିରେ ତାଙ୍କର ଫଳିଛି ଗୋଟିଏ
ପାଚିବ ସିଏ କେବେକୁ ।

ଦିନ ପରେ ଦିନ ବଢ଼ି ଚାଲୁଥାଏ
ଭଣ୍ଡା ଫଳର ଆକାର,
ପିଲାଟି ଖୁସିରେ ନାଚି ଉଠୁଥାଏ
ପାଚିଲେ ହେବ ଆହାର ।

ଦିନେ ସେ ଦେଖିଲା ପୂରା ପାଚିଅଛି
ତୋଳିଲେ ଚଳିବ ତାକୁ,
ଅନୁମତି ନେଇ ମାଆଙ୍କ ପାଖରୁ
ଗଲା ତୋଳି ଆଣିବାକୁ ।

ହାତରେ ଧରି ସେ ପାଚିଲା ଫଳକୁ
ଆନନ୍ଦେ ହେଲା ଅଧୀର,
ସୀମା ଟପିଗଲା ତା'ମନ ଆବେଗ
ଦେଖି ମା' ହେଲେ ବିଭୋର ।

କହିଲେ, "ପୁଅରେ ଖାଇବା ଆଗରୁ
ଜଳରେ ଧୁଅ ଫଳକୁ,
ଚୋପା ଛେଲି ତା'ର କାଟି ଛଡ଼ାଇବୁ
ତା'ପରେ ଖାଇବୁ ତାକୁ ।"



ଧୋଇସାରି ଫଳ କାଟିଲା ଯତନେ
କଥାମାନି ମାଆଙ୍କର,
ମାଆ ପଚାରିଲେ, "କହିଲୁ ପୁଅରେ
ମୋର ଏ ପ୍ରଶ୍ନ ଉତ୍ତର ।
ସମୁଦାୟ କେତେ ଭଣ୍ଡା ଫଳିଅଛି
ସାରା ଗାଆଁରେ ଆମର ?"
ପିଲାଟି କହିଲା, "ଏଇ ଗୋଟି ଛଡ଼ା
ଆଉ ନାହିଁ ଯେ କାହାର ।"

"ଯେଉଁମାନେ ଆସି ଦେଖିଥିବେ ଫଳ
ନଦେଇ କେମିତି ତାଙ୍କୁ,
ଏକା ଏକା ତୁହି ଆହାର କରିବୁ
କହିଲୁ ଦେଖି ଏହାକୁ ?



ଗ୍ରାମବାସୀଙ୍କର ଫଳଟି ଉପରେ
ଅଛି ସମ ଅଧିକାର,
ବାଡ଼ିରେ ଆମର ଫଳିଛି ସିନା ସେ
ନୁହଁଇ ଏକା ଆମର ।

ଯେତିକି ପାରିବୁ ଗ୍ରାମବାସୀ ମଧ୍ୟେ
ଫଳଟିକୁ ବାଣ୍ଟିଦିଏ,
ବଳକାକୁ ଖାଇ ଆନନ୍ଦ ପାଇବୁ
କଥା ମୋର ମାନିନିଏ ।"

ମାଆଙ୍କର କଥା ଆଲୋଡ଼ିତ କଲା
ହୃଦୟକୁ ପିଲାଟିର,
ପଡ଼ୋଶୀମାନଙ୍କୁ ବାଣ୍ଟି ସାରି ଯାହା
ବଳିଲା କଲା ଆହାର ।

ଦ୍ୱି'ଗୁଣ ଆନନ୍ଦ ପାଇଲା ପିଲାଟି
ବାଣ୍ଟିସାରି ଖାଇବାରେ,
ସେହିଦିନୁ ଏକା ଖାଇବନି କିଛି
ବିଚାର କଲା ମନରେ ।

ଏକା ଖାଇବାଠୁ ଅନ୍ୟମୁଖେ ଦେଲେ
ବହୁତ ଆନନ୍ଦ ମିଳେ,
ଅନ୍ୟ ମୁଖେ ହସଭରିଲେ ନିଜକୁ
ସନ୍ତୋଷ ମିଳଇ ବଳେ ।

କୌଣସି ବସ୍ତୁରେ ଏକା ମାଲିକାନା
ଶୁଭଙ୍କର କେବେ ନୁହେଁ,
ସମାଜକୁ ତହିଁ ଜଡ଼ିତ କରିଲେ
ମଙ୍ଗଳ ଦାୟକ ହୁଏ ।



ଏହି  ଭାବଧାରା  ପିଲାଟି ଅନ୍ତରେ
ଅହରହ ରହିଥାଏ
ବଡ଼ ହେଲା ପରେ ଭୂମିହୀନ କଥା
ମନରେ ଭାବିଲା ସିଏ ।

ଏ ଦେଶରେ କେତେ ମାଲିକ ଅଛନ୍ତି
ରଖିଛନ୍ତି ବହୁ ଭୂମି,
ଅଥଚ ଅନେକ  ନିସ୍ୱ ରହିଛନ୍ତି
ନ ପାଇ ଖଣ୍ଡିଏ ଜମି ।

ଦରକାର ଠାରୁ ବେଶୀ ରଖି ଦଳେ
ଖୁସିରେ କାଟନ୍ତି ଦିନ
ମୁଣ୍ଡ ଗୁଞ୍ଜିବାକୁ ନ ପାଇ କେତେକ
ଭୋଗନ୍ତି ନାନା କଷଣ ।

ସେଥିପାଇଁ ସିଏ ମତାଇ ଲୋକଙ୍କୁ
କଲା ଏକ ଆନ୍ଦୋଳନ,
ଦେଶସାରା ଆମ ପଡ଼ିଲା ଚହଳ
ଖୁସି ହେଲେ ଭୂମିହୀନ ।



ଚାରିଆଡ଼େ ବୁଲି ମାଗିଲା ବିନୟେ
"ଅଧିକ ଭୂମି ଯାହାର,
ଭୂମିହୀନ ପାଇଁ ଖଣ୍ଡିଏ ସେଥିରୁ
ଇଚ୍ଛାମତେ ଦାନ କର।"

ଅନୁଷ୍ଠାନଟିଏ ଗଢ଼ିଲା ଯତନେ
'ଭୂଦାନ ସମିତି' ନାମେ,
ଯୋଗଦେଲେ କେତେ ଆହୁତି ଦେବାକୁ
ମହାନ ସେ ଯଜ୍ଞ କାମେ ।



ଯଜ୍ଞର କରତା ଭୂମିହୀନ ବନ୍ଧୁ
'ଆଚାର୍ଯ୍ୟ ବିନୋବା' ନାମ,
ଫୁଙ୍କିଲା ସମତା ମନ୍ତ୍ର ଦେଶସାରା
କଲା ସେ ମହତ କାମ ।



# • କିଣିଲା ଜନମନକୁ •

‘ରାଣା ପ୍ରତାପ’ ଓ ସହଯୋଗୀ ତାଙ୍କ
ବୀର ‘ରଘୁପତି ସିଂହ’,
ବଣରେ ରହିଲେ ଆତ୍ମରକ୍ଷା ପାଇଁ
ଲୁଚାଇ ନିଜର ମୁହଁ ।

ଇଚ୍ଛା କଲେ ନାହିଁ ମୋଗଲ ନିକଟେ
କରିବାକୁ ମଥା ନତ,
‘ଆକବର’ଙ୍କର ଆଦେଶ ମିଳିଲା
“ଧର ଦୁଇ ରାଜପୁତ” ।

ସଚ୍ଚା ଦେଶପ୍ରେମୀ ବୀର ‘ରଘୁପତି’
ରହି ‘ରାଣା’ଙ୍କ ସଙ୍ଗରେ,
ଆକ୍ରମଣ କଲେ ମୋଗଲମାନଙ୍କୁ
ଲୁଚିଛପି ସେହିଠାରେ ।



ଏକାଳେ ଆସିଲା ଖବର ତାଙ୍କର
“ପଡ଼ିଛି ବେମାରେ ପୁଅ,
ମରିବ ବଞ୍ଚିବ କହିହେଉ ନାହିଁ
ଆସି ଦେଖି ଚାଲିଯାଅ ।”

ଛଟପଟ ହେଲା ମନ 'ରଘୁ'ଙ୍କର
ଧାଇଁଲେ ଘରକୁ ତହିଁ,
ବାଟରେ ମାଟିଲା ପରିଚୟ ତାଙ୍କ
ରୋକି ମୋଗଲ ସିପାହୀ ।

ମିଛ କହିବାକୁ ମନ ଗଲା ନାହିଁ
ସତକଥା କହିଦେଲେ,
ପରିଚୟ ପାଇ ସିପାହୀ ଜଣକ
ବନ୍ଦୀ କରିବେ ଚାହିଁଲେ ।

ଅନୁନୟ ହୋଇ 'ରଘୁପତି ସିଂହ'
ପୁଅର କଥା କହିଲେ,
"ଫେରିଆସି ଘରୁ ଧରାଦେବେ ନିଶ୍ଚେ"
ତା'ନିକଟେ ସତ୍ୟ କଲେ ।

ଦୟା ହେଲା ଶୁଣି ସିପାହୀ ମନରେ
ପୁଅର ଅସୁସ୍ଥ କଥା,
ଛାଡ଼ିଦେଲା ତାଙ୍କୁ ଘର ଯିବା ପାଇଁ
ନଦେଇ ମନରେ ବ୍ୟଥା ।





ପହଞ୍ଚିଲାମାତ୍ରେ ଘରେ 'ରଘୁପତି'
ପତ୍ନୀ ବିଳପି ଉଠିଲେ,
ପତ୍ନୀଙ୍କୁ ବୁଝାଇ ଅସୁସ୍ଥ ପୁଅକୁ
ମନଭରି ଗେଲ କଲେ ।

ପୁନଶ୍ଚ ଆସିବେ ଆଶ୍ୱାସନା ଦେଇ
ଉଠିଲେ ଫେରିବା ପାଇଁ,
ପତ୍ନୀ ମତ ଦେଲେ ଅନ୍ୟବାଟେ ପଳା
ସିପାହୀ ପାଶେ ନ ଯାଇ ।

ପରାମର୍ଶ ତାଙ୍କ ଗ୍ରହଣ ନ କରି
ସେହିବାଟେ 'ରଘୁ' ଗଲେ,
ସତ୍ୟରକ୍ଷା କରି ସିପାହୀ ହାତରେ
ନିଜକୁ ସମର୍ପି ଦେଲେ ।

ରାଜପୁତଙ୍କର ସତ୍ୟରକ୍ଷା ଦେଖି
ତରଳିଗଲେ ସିପାହୀ,
କହିଲେ, "ତୁମକୁ ବନ୍ଦୀ କରିବାକୁ
ମନ ମୋର ବଳୁନାହିଁ ।

ଯହିଁ ଇଚ୍ଛା ତହିଁ ଯାଇପାର ତୁମେ
ଶଙ୍କା ନରଖି ମନରେ,”
“ଏ ଋଣ ଶୁଝିବି” ‘ରଘୁ’ କଥାଦେଇ
ଚାଲିଲେ ନିଜ ବାଟରେ ।



ଗୋପନେ ଜାଣିଲେ ଅଧିକାରୀ ଜଣେ
ସିପାହୀଟି ବନ୍ଦୀ ହେଲା,
ଅବଜ୍ଞା କରିଛି ରାଜାଙ୍କ ଆଦେଶ
କରିଛି କର୍ତ୍ତବ୍ୟେ ହେଳା ।

ଶୁଣି ଏ ଖବର ‘ରଘୁପତି’ ଆସି
ଆତ୍ମସମର୍ପଣ କଲେ,
ତାଙ୍କ ଲାଗି ସେହି ସିପାହୀ ଜଣକ
ଦଣ୍ଡ ନପାଉ ଚାହିଁଲେ ।

ଅଧିକାରୀଙ୍କର କଠୋର ସ୍ୱଭାବ
ଦୁହିଁଙ୍କୁ ରଖି ଅଟକ,
ମୃତ୍ୟୁଦଣ୍ଡ ପାଇଁ ସୁପାରିଶ କଲେ
ନଶୁଣି ପ୍ରାର୍ଥନା ତାଙ୍କ ।

‘ଆକବର’ଙ୍କର କାନରେ ପଡ଼ିଲା
ଘଟଣା ଥିଲା ବିଖ୍ୟାତ,
ଦୁଇ ବନ୍ଦୀ ଡାକି ଆଣିଲେ ପାଖକୁ
ବୁଝିଲେ ସବୁ ବୃତ୍ତାନ୍ତ ।

ମୋଗଲ ସିପାହୀ ଦୟା ମନୋଭାବ
କିଣିଲା 'ବାଦଶା' ମନ,
"ଦାୟିତ୍ୱ ପଛରେ କହିଲେ 'ବାଦଶା'
ଆଗେ 'ଖୋଦା'ଙ୍କ ସନ୍ତାନ ।
କରିଛ ପାଳନ 'ଖୋଦା'ଙ୍କର ଧର୍ମ
ଦୋଷ ନାହିଁ କିଛି ତୁମ,
ପୂର୍ବପରି ଯାଇ କର୍ତ୍ତବ୍ୟ ତୁଲାଅ
ଫେରିଯାଅ ନିଜ ଧାମ ।"



ଚାହିଁଲେ 'ବାଦଶା' 'ରଘୁ'ଙ୍କ ମୁହଁକୁ
କହିଲେ, "ହେ ରାଜପୁତ,
ସତ୍ୟରକ୍ଷା କରି ଦେଖାଇ ଦେଇଛ
ଉଚ୍ଚକୁଳେ ତୁମେ ଜାତ ।
ପ୍ରଶଂସା କରୁଛି ବାହାଦୁରି ତୁମ
ଶତ୍ରୁ ମିତ୍ର ମୋର ନାହିଁ,
ସମ୍ମୁଖେ ନ ଆସି ଲଢ଼େଇ କରୁଛ
ବଣେ ଲୁଚିଛପି ରହି ?"



'ରଘୁ' ସେହିଠାରେ ବଚନ ଦେଲେ,"ମୁଁ
ଧରିବି ନାହିଁ ଖଡ଼ଗ,
ଆକ୍ରମଣ ମୋତେ ମୋଗଲ ପକ୍ଷରୁ
ନ ହୋଇଲେ କେବେ ଆଗ ।"

ମହାନୁଭବ ସେ ରାଜା 'ଆକବର'
ପ୍ରୀତ 'ରଘୁ'ଙ୍କ ଉପରେ,
ଚିକିତ୍ସା ବ୍ୟବସ୍ଥା କରିଲେ ପୁଅର
ନିଜେ ଯାଇ ତାଙ୍କ ଘରେ ।

ମଣିଷ ପଣିଆ 'ଆକବର'ଙ୍କର
ଚକିତ କଲା ସଭିଙ୍କୁ,
ଶାସନେ କଠୋର ହୃଦୟ କୋମଳ
କିଣିଲା ଜନମନକୁ ।





## ଡକ୍ଟର ହେମନ୍ତ କୁମାର ଛୋଟରାୟ

ଜନ୍ମ : ଭାଦ୍ରବ କୃଷ୍ଣପକ୍ଷ ଦ୍ୱାଦଶୀ
୦୭।୦୮।୧୯୬୧

ପିତା : ବୃନ୍ଦାବନ ଛୋଟରାୟ

ମାତା : ୰ଜ୍ୟୋସ୍ନାମୟୀ ଛୋଟରାୟ

ଜନ୍ମମାଟି : ଗଡ଼ମାଟିଆପଡ଼ା, କଣାସ, ପୁରୀ

ଶୈଶବକାଳରୁ ସାହିତ୍ୟ, ସଂସ୍କୃତି ପ୍ରତି ଆକୃଷ୍ଟ ହୋଇ ସାରସ୍ୱତ ସାଧନାରେ ନିମଗ୍ନ ଡକ୍ଟର ହେମନ୍ତ କୁମାର ଛୋଟରାୟ ଜଣେ ସଫଳ ଶିଶୁସାହିତ୍ୟ ସ୍ରଷ୍ଟା ଭାବରେ ବେଶ୍ ପରିଚିତ । ତାଙ୍କର ପ୍ରଥମ ରଚନା ୧୯୭୯ ମସିହାରେ ରାଜ୍ୟର ପ୍ରମୁଖ ଶିଶୁସାହିତ୍ୟ ପତ୍ରିକା 'ଶିଶୁଲେଖା'ରେ ପ୍ରକାଶ ପାଇଥିଲା । ସେହିଦିନଠାରୁ ଶିଶୁ-କିଶୋରମାନଙ୍କ ପାଇଁ ଓଡ଼ିଶାର ବିଭିନ୍ନ ପତ୍ର-ପତ୍ରିକାରେ ସେ ଲେଖନୀ ଚାଳନା କରି ପାଠକମାନଙ୍କ ପ୍ରଶଂସାର ପାତ୍ର ହୋଇଛନ୍ତି । ତାଙ୍କର ସଫଳତା ପାଇଁ ବହୁ ଅନୁଷ୍ଠାନ ପକ୍ଷରୁ ତାଙ୍କୁ ମିଳିଛି ପୁରସ୍କାର ଓ ସମ୍ମାନ ।

ପ୍ରକାଶିତ ପୁସ୍ତକ :

- ତୁମ କଥା ସତଲୋ ସଙ୍ଗାତ (ଶିଶୁଗଳ୍ପ)
- ପଥିକ ଭାଇର ଡାକ (ଶିଶୁନାଟକ)
- କୁହୁକ କଲମ (ଶିଶୁଗଳ୍ପ)
- ବାଘ ବାହାଘର (ପିଲାଙ୍କ କାହାଣୀ)
- ଅସତ୍ୟ ଇଲାକାର କାହାଣୀ (ନାଟକ)
- ପାଞ୍ଚୋଟି ଏକାଙ୍କିକା (ଏକାଙ୍କିକା ସଂକଳନ)

ବିବେକ, ନାଗାବଗିଚା, ମଧୁବନ, ପୁରୀ - ୨